କାର୍ଲ ଆରୋନ୍

# ଆକାଶ ପଥେ ମଣିଷ









"ରାଦୁଗା" ପ୍ରକାଶନ
ମସ୍କୋ

# ଆକାଶ ପଥେ ମଣିଷ

କାର୍ଲ୍ ଆରୋନ୍

ଅଙ୍କନ-
ଇ.ବେନ୍ୟାମିନ୍‌ସନ୍
ଓ ବି.କିଶ୍‌ଚିମଭ୍

ଅନୁବାଦ-
ଶ୍ରୀ ଗୌରାଙ୍ଗ ଚରଣ ରଥ



"ରାଦୁଗା" ପ୍ରକାଶନ
ମସ୍କୋ

ଆମେ ଜନମିଛୁ ତ'
ପରୀକାହାଣୀକୁ କରିବୁ ସତ...

(ଗୋଟିଏ ଗୀତରୁ)



ମଣିଷ ହରିଣ ପରି ଦୌଡ଼ି ପାରେ, ସାପ ଭଳି ଘୁଷୁରି ପାରେ ଓ ମାଛ ପରି ପହଁରି ପାରେ; କିନ୍ତୁ ସେ ତ' ଚଢ଼େଇ ଭଳି ଉଡ଼ି ପାରିବ ନାହିଁ । ଉଚ୍ଚ ଆକାଶକୁ ଉଠୁଥିବା ଚଢ଼େଇମାନଙ୍କୁ ଇର୍ଷାର ସହ ଦେଖିଲା ବେଳେ ଶହଶହ ବର୍ଷ ଧରି ଲୋକମାନେ ଏପରି ଭାବୁଥିଲେ । ଲୋକମାନେ ସେତେବେଳେ ସ୍ୱପ୍ନ ଦେଖନ୍ତି :

"ଏକ କୁହୁକ ଗାଲିଚ୍ଚ ଉପରେ ବସି, ଅଗ୍ନାଅଗ୍ନି ବନସ୍ତ, ଏପରିକି ମେଘ ଉପରେ ଉଡ଼ିଲେ ବଢ଼ିଆ ହେବ ! କିମ୍ବା ଚଢ଼େଇ ପରଗୁଡ଼ିଏ ନେଇ ଡେଣାମାନ ତିଆରି କରି ଆକାଶକୁ ଉଡ଼ିଗଲେ ବି ବଢ଼ିଆ ହେବ !" କିନ୍ତୁ ବହୁକାଳଯାଏ ଡେଣାଲଗା ଲୋକ ଓ କୁହୁକ ଗାଲିଚ୍ଚ କଥା, କେବଳ ପରୀକାହାଣୀରେ ଥିଲା ।

ଏହା ସତ କଥା ବୋଲି ଲୋକମାନେ କହନ୍ତି ଯେ, ବହୁତ ଦିନ ପୂର୍ବେ ଜଣେ ଚାଷୀ ଚମଡ଼ାରେ ଡେଣାମାନ ତିଆରି କଲା, ବଡ଼ ସହରର ଏକ ଛକକୁ ଆସିଲା ଏବଂ ଘୋଷଣା କଲା – ସେ ଏକ ବଗୁଲା ଭଳି ଉଡ଼ିପାରିବ । ସଙ୍ଗେସଙ୍ଗେ ଦେଖଣାହାରୀଙ୍କର ଭିଡ଼ ଜମିଗଲା, ସେ କିପରି ଉଡ଼ିବ ଦେଖିବା ଲାଗି ଲୋକେ ଗୁହିଁ ରହିଲେ । ଚାଷୀ ତା'ର ଲମ୍ବା ଜାମା କାଢ଼ିଲା ଓ ତା'ର ଦୁଇ କାନ୍ଧ ପାଖେ ଦୁଇଟା ଡେଣା ଲଗାଇଲା ।

"ଏମେଲ୍‌କା, ଉଡ଼ିଯା !" ଭିଡ଼ କରିଥିବା ଲୋକେ ତାକୁ ଚେହିବାରେ ଲାଗିଥାନ୍ତି; କିନ୍ତୁ ସେ ଯେତେ ଦୌଡ଼ାଦୌଡ଼ି କଲେ ଓ ଡେଣା ଫଡ଼ଫଡ଼ କଲେ କ'ଣ ହେଲା ଭୁଇଁରୁ ଉପରକୁ ଉଠି ପାରିଲା ନାହିଁ । କେତେ ଲୋକ ତ' ହସି ଉଡ଼େଇଲେ ଓ ଛି-ଛାକର କଲେ; କିନ୍ତୁ ଅନ୍ୟମାନେ ନିରାଶରେ ମୁଣ୍ଡ ହଲାଇ କହିଲେ : "ତଳୁ ଉଠି ଉପରେ ଉଡ଼ିବା ବୋଧହୁଏ ମଣିଷ ଭାଗ୍ୟରେ ନାହିଁ ।"

କିନ୍ତୁ ସେମାନଙ୍କ କଥା ଭୁଲ ହେଲା ।



ଆକାଶରେ ଉଡ଼ିବା ଲାଗି ମନୁଷ୍ୟ ଅନେକ ପ୍ରକାରର ଡେଣା ଉଦ୍ଭାବନ କଲା !



ଫ୍ରାନ୍‌ଚେସ୍‌କୋ ଦି ଲ୍ୟାଁଙ୍କର ଉଡ଼ନ୍ତା ଯନ୍ତ୍ର—ଆଗରୁ ତିଆରି ଏକ ବେଲୁନର ନକ୍‌ସା ।



ପ୍ରଥମ ବ୍ୟୋମଯାତ୍ରୀ—ଗୋଟିଏ ମେଣ୍ଢା, ଗୋଟିଏ ଅଣ୍ଡିରା କୁକୁଡ଼ା ଏବଂ ଗୋଟିଏ ବତକ—ମୋଙ୍ଗୋଲଫିଏର ବେଲୁନରେ ଯାଇଥିଲେ ।

# ଆକାଶ ପଥେ ମଣିଷ

ଅନେକ ବର୍ଷ ପୂର୍ବେ ଫରାସୀ ଦେଶର ଦକ୍ଷିଣରେ ଗୋଟିଏ ଛୋଟ ସହରରେ ଦୁଇ ଭାଇ ରହୁଥିଲେ—ଯୋଶେଫ ଓ ଏତିଏନ୍ନେ ମୋଙ୍ଗୋଲଫିଏର । ସେମାନେ ଚତୁର ଓ କୌତୂହଳୀ ଥିଲେ । ଧୂଆଁ ନଳରୁ ଧୂଆଁ ବାହାରିବା ଦେଖି ସେମାନେ ପଚରାପଚରି ହେଉଥିଲେ—ଧୂଆଁ ଉପରକୁ ଉଠୁଛି କାହିଁକି ? ଶେଷରେ ସେମାନେ ସ୍ଥିର କଲେ ଯେ, ଗରମ ପବନ ବୋଧହୁଏ ଥଣ୍ଡା ପବନଠାରୁ ହାଲୁକା, ସେହି କାରଣରୁ ଗରମ ଧୂଆଁ ଆକାଶକୁ ଉଠୁଛି । ତା'ପରେ ଦୁଇ ଭାଇ କାଗଜକୁ ଅଠା ଲଗାଇ ଯୋଡ଼ି ଗୋଟାଏ ବଡ଼ ବେଲୁନ ତିଆରି କଲେ ଓ ନିଆଁ ଜଳେଇ ତାକୁ ଧୂଆଁରେ ଭରି ଦେଲେ । ବେଲୁନଟି ସଙ୍ଗେସଙ୍ଗେ ଆକାଶକୁ ଉଠିଲା ଓ ଶୀଘ୍ରଶୀଘ୍ର ଆହୁରି ଉଚ୍ଚକୁ ଗଲିଲା ...

ଏହା ପରେ କେତେ ମାସ ବିତିଲା ଓ ସେହି ଦିନଟି ଆସିଲା, ଯେତେବେଳେ ଇତିହାସରେ ପ୍ରଥମ ଥର ପାଇଁ ମଣିଷ ମୋଙ୍ଗୋଲଫିଏର ବେଲୁନରେ ଚଢ଼ିଲା । ତାଙ୍କର ନାମ—ପିଲାତ୍ରେ ଦେ ରୋସୀ ।



"ଓଃ, ମୋଙ୍ଗୋଲଫିଏର ବେଲୁନରେ ସେଇ ଦାନବୀୟ ଉଡ୍‌ଡୟନ ତୁମେ ଦେଖିଥିଲ ?"
"ହଁ, ଦେଖିଥିଲି ; ଖାଲି କ'ଣ ମୁଁ, ରାଜା ନିଜେ ସେଇ ଉଡ୍‌ଡୟନ ଲକ୍ଷ୍ୟ କରିଥିଲେ ।"






ପ୍ୟାରିସ୍‌ର ଶହଶହ ଲୋକ ଏକ ବଡ଼ ଛକରେ ଜମା ହେଲେ, ଛାତରେ ଏବଂ ଧୂଆଁନଳଗୁଡ଼ିକ ପାଖରେ ଖୁନ୍ଦି ହୋଇଗଲେ। ଗୋଟାଏ ତୋପ ଫୁଟିଲା ଓ ଧୂଆଁରେ ବୋଝେଇ ବେଲୁନଟିଏ ଧୀରେ ଧୀରେ ଛକ ଉପରକୁ ଉଠିଲା। ଭିଡ଼ ଜମେଇ ଥିବା ଲୋକେ ଆନନ୍ଦରେ ପାଟି କଲେ: "ସାବାସ୍ ପିଲାତ୍ରେ! ଯାହା ହେଉ ମଣିଷ ଆଜି ଉଚ୍ଚ ଆକାଶକୁ ଉଠିଲା!"

ହଠାତ୍ ଆସିଲା ଦମକାଏ ପବନ, ବେଲୁନକୁ ଗୋଟାଏ ଗଛ ଆଡ଼କୁ ତଡ଼ିନେଲା। ଏପରି ବୋଧ ହେଲା ଯେ, ଆଖିପିଛୁଳାକେ ଡାଳଗୁଡ଼ାକ ବେଲୁନକୁ ଚିରି ପକେଇବ; କିନ୍ତୁ ପିଲାତ୍ରେ ଖୁବ୍ ଚଞ୍ଚଳ ପୁଳାଏ କୁଟାମୁଟା ନେଇ ବେଲୁନରେ ରଖାଯାଇଥିବା ଉହ୍ନେଇରେ ତାକୁ ମାଡ଼ି ଦେଲେ, ବେଲୁନ ଆଡ଼କୁ ଗରମ ପବନ ଛୁଟିଲା, ସେଇଟି ଉପରକୁ ଉପରକୁ ଉଠିଲା ଓ ଗଛ ଉପରେ ଉଡ଼ିଗଲା।

"କେମିତି ଲାଗିଲା?"—ବେଲୁନ ତଳକୁ ଖସିବା ପରେ ଲୋକମାନେ ତାଙ୍କୁ ପଚାରିଲେ।

"ଅତି ଚମତ୍କାର", ସାହସୀ ଆକାଶଚାରୀ କହିଲେ, "ଠିକ୍ ଏକ ସ୍ୱପ୍ନ ଭଳି"।

ଆକାଶରେ ବେଲୁନଟିଏ। ତଳେ ତା'ର ଝୁଲୁଛି ବଡ଼ ଏକ ଟୋକେଇ। ଟୋକେଇଟି ବାଲିବସ୍ତାରେ ଭରା। ବେଲୁନ ଉଚ୍ଚକୁ ଉଠୁ ବୋଲି ଲୋକମାନେ ଇଚ୍ଛା କରିବା ବେଳେ ଗୋଟିଏ ଲେଖାଏଁ ବାଲିବସ୍ତାକୁ ତଳକୁ ଫିଙ୍ଗି ଦିଅନ୍ତି। ଘଟଣାଟି ଘଟିଥିଲା ୧୭୮୩ ମସିହାରେ।



1852



ଫରାସୀ ଦେଶର ଜିଫାର ନାମକ ଜଣେ ଲୋକ ପ୍ରଥମ ଉଡ଼ାଜାହାଜ ନିର୍ମାଣ କରିଥିଲେ । ସେଥିରେ ଏକ ବାଷ୍ପୀୟ ଇଂଜିନ୍ ଲାଗିଥିଲା ।



ଏମ୍. ମାଲିଖିନ୍‌ଙ୍କ ଦ୍ୱାରା ଏକ "ବିମାନ ବିଧ୍ୱଂସକ ଯାନ"ର ନକ୍ସା ।



କେ. ଇ. ସିଅଲ୍‌କୋଭ୍‌ସ୍କିଙ୍କ ଦ୍ୱାରା ନକ୍ସାକୃତ, ପୂରା ଧାତୁପତ୍ରରେ ତିଆରି ଉଡ଼ାଜାହାଜର ଏକ ନମୁନା ।



ବେଲ୍‌ଫେରତ୍ ବେଲୁନର ଚଟକାତଳ ନୌକା । ଏଥିରେ ଏକ ପେଟ୍ରୋଲ ଇଂଜିନ୍ ଥିଲା ।

# ଆକାଶରେ ଉଡ଼ୁଛି ମାଛ

ଗୋଟିଏ ବେଲୁନରେ ପ୍ରଥମେ ଉଡ଼ିବା, ପ୍ରାୟ ଦୁଇ ଶହ ବର୍ଷ ପୂର୍ବର କଥା, ସେଇ ଦିନୁ ଲୋକମାନେ ଅନେକ ଥର ବେଲୁନରେ ବସି ଉଡ଼ିଲେଣି ; କିନ୍ତୁ ପରେ ବେଲୁନଗୁଡ଼ିକୁ ଗରମ ପବନରେ ନଭରି ହାଲୁକା ବାଷ୍ପରେ ଭରା ଯାଇଥିଲା । ତା'ପରେ ବେଲୁନରେ ଲାଗିଲା ଏକ ଇଂଜିନ୍, ଯାହା ସହ ଏକ ଚାଳନଚକ୍ର ମଧ୍ୟ ଖଞ୍ଜାଗଲା ଏବଂ ବେଲୁନଟି ହେଲା ଏକ ମନଚଳା ଯାନ ।

ସେହି ମନଚଳା ଯାନଟି ଗୋଟିଏ ବଡ଼ ଉଡ଼ନ୍ତା ମାଛ ଭଳି ଆକାଶରେ ଉଡ଼ିଲା । ତା'ର ଏକ ପୁଚ୍ଛ ଥିଲା, ଏବଂ ପେଟ ତଳେ ଥିବା ଅଂଶ ଏକ ପକ୍ଷ ଭଳି ଦେଖା ଯାଉଥିଲା । ଜଣେ ସେହି ଅଂଶକୁ ଚଢ଼ିପାରେ, ଇଂଜିନ୍‌କୁ ଚଳାଇ ପାରେ ଏବଂ ନିଜ ମନ ଖୁସିରେ ଉଡ଼ି ପାରେ । ପବନ ଉପରେ ନିର୍ଭର କରୁଥିବା ଏବଂ ପବନର ଗତିରେ ତଡ଼ି ହୋଇ ଯାଉଥିବା ବେଲୁନ ଭଳି ଏହା ନଥିଲା ।

ମନଚଳା ଯାନଟି ଆକାଶରେ ଉଡ଼ିଲା ଏବଂ ତା ଉପରେ ଉଡ଼ିଲା, ତା'ର ଡେଣାଲଗା ପ୍ରତିଯୋଗୀ – ଏକ ବିମାନ ବା ପୂର୍ବକାଳରେ ଯାହାକୁ କୁହାଯାଉଥିଲା ଏକ ବ୍ୟୋମଯାନ, ସେଇଟି ଏକ ରୂପେଲି ଚଢ଼େଇ ଭଳି ଉଡ଼ିଲା । ତେବେ ବିମାନର ନିଜର ଏକ ଇତିହାସ ମଧ୍ୟ ଅଛି ।



ଏହାର ନିୟନ୍ତ୍ରକ କୋଠରୀଟି ଜାହାଜର କ୍ୟାପ୍ଟାନଙ୍କ ଡେକ୍ ଭଳି ।



ଆମେରିକାର ଜଣେ ଅଧିବାସୀ ରିଚ୍‌ଟେଲଙ୍କର "ଉଡ଼ନ୍ତା ଦୁଇ ଚକିଆ ସାଇକ୍ଲ" ।





୧୯୩୬ରେ ଦୀର୍ଘ ପଥ ଉଡ଼ିବା କ୍ଷେତ୍ରରେ ବିଶ୍ବ ରେକର୍ଡର ପ୍ରତିଷ୍ଠାକାରୀ ସୋଭିଏତ୍ ବ୍ୟୋମଯାନ "ଓସୋଆଭିଆଖିମ" ।



ପୋଣି ଦ ଆମେକ୍ୟୁର୍ ଏବଂ ଦା ଲ ଲନ୍ଦେଲଙ୍କ ଦ୍ୱାରା ଏକ ଉଡ଼ାଜାହାଜର ନକ୍ସା । ୧୮୯୭ ।

# ପବନଠାରୁ ଓଜନଦାର

ଅଧିକାରୀମାନଙ୍କର ଏକ ଦଳ ବାଡ଼ଘେରା ଏକ ବିରାଟ ପଡ଼ିଆରେ ଠିଆହୋଇ ଏକ ଅଦ୍ଭୁତ ଜିନିଷକୁ ଆଗ୍ରହର ସହ ଦେଖିଥିଲେ : ଚକାମାନ ଲଗିଥିବା ଏକ ଲମ୍ବା ନୌକା — ତା'ର ଦୁଇଟି ଆୟତାକାର ଡେଣା ଓ ଗୋଟିଏ ଲଞ୍ଜ ମଧ୍ୟ ଅଛି । ତିନିଟି ଚାଳନଚକ୍ର — ସାମନାରେ ଗୋଟିଏ ଓ ଦୁଇ ପାଖରେ ଦୁଇଟି — ସେସବୁ ଏକ ବାଷ୍ପୀୟ ଇଂଜିନ୍ ସହ ସଂଯୁକ୍ତ । ତାହା ଥିଲା — ରୁଷୀୟ ଅଧିକାରୀ ମୋଝାଇସ୍କୀଙ୍କ ଦ୍ୱାରା ତିଆରି ପ୍ରଥମ ଉଡ଼ାଜାହାଜ । ପବନଠାରୁ ଅଧିକ ଓଜନ ଏକ ଉପକରଣରେ କେହି କେବେ ଉଡ଼ିବା ଲାଗି ଚେଷ୍ଟା କରିନଥିଲେ, ତେଣୁ ସବୁ ଲୋକ, ତାକୁ କେତେବେଳେ ପରୀକ୍ଷା କରାଯିବ ତାହା ଦେଖିବା ଲାଗି ଉତ୍କଣ୍ଠାର ସହ ଅପେକ୍ଷା କରି ଥାଆନ୍ତି ।

ତା'ପରେ ଇଂଜିନ୍‌ମାନ ଚାଲିଲା, ଚାଳନ-ଚକ୍ରଗୁଡ଼ିକ ଘୂରିବା ଆରମ୍ଭ କଲା, ଧୂଆଁରେ ଢାଙ୍କି ହୋଇଯାଇ ଉପକରଣଟି ଲୁହାଧାରଣାରେ ଆଗକୁ ଗଡ଼ିଲା ଏବଂ ତା'ର ବେଗ ବଢ଼ିଗଲା । ତା'ପରେ ସେଇଟି ଲମ୍ଫ ଦେଲା, ଉପରେ ଗୋଟିଏ ସେକେଣ୍ଡ ପାଇଁ ରହିଲା, ପୁଣି ତା'ର ଡେଣା ମାଡ଼ି ତଳେ ପଡ଼ିଗଲା । ସେ ସମୟରେ ଇଂଜିନ୍‌ଗୁଡ଼ିକ ଥିଲା ଅତିଓଜନିଆ ; ପବନରେ ଓଜନଦାର ଯନ୍ତ୍ରଟାକୁ ଉଡ଼ାଇ ରଖିବା ଲାଗି ଅତିଦୁର୍ବଳ ।



1897

"ଆଭିଓନ" — ଫରାସୀ ଇଂଜିନିୟର କ୍ଲିମ୍ୟାନ୍ ଆଦେରଙ୍କର ନକ୍ସା ଅନୁଯାୟୀ ପ୍ରସ୍ତୁତ ବାଷ୍ପୀୟ ଇଂଜିନ୍ ଲାଗିଥିବା ପ୍ରଥମ ବିମାନଗୁଡ଼ିକ ମଧ୍ୟରୁ ଗୋଟିଏ । ତା'ର ଡେଣାଗୁଡ଼ିକ ବାଦୁଡ଼ିର ଡେଣା ଭଳି, କିନ୍ତୁ ତାଠାରୁ ଖୁବ୍ ଅଧିକ ଲମ୍ବା — ୭ ମିଟର, ଏବଂ ଚାଳନଚକ୍ରର ଚଟକା ଫଳକମାନ ଚଢ଼େଇର ପର ଭଳି ।



୧୮୮୫ । ମୋନୋପ୍ଲେନ (ଏକପକ୍ଷବିଶିଷ୍ଟ ଉଡ଼ାଜାହାଜଗୁଡ଼ିକର ସେଇ ନାମ ଥିଲା) ଫାଷ୍ଟ ର୍‌ୟାଙ୍କ୍‌ର କ୍ୟାପ୍‌ଟେନ ଏ.ଏଫ୍.ମୋଝାଇସିଙ୍କ ଦ୍ୱାରା ନିର୍ମିତ । ଅନ୍ୟ ଯେକୌଣସି ଉପକରଣ ଅପେକ୍ଷା, ତା'ର ନକ୍‌ସା, ଆଧୁନିକ ଉଡ଼ାଜାହାଜ ଭଳି ଥିଲା ।



ଦୁଇପକ୍ଷର ଦୁଇପେଟିଆ ଗ୍ଲାଇଡରରେ ଓଟ୍ଟୋ ଲିଲିଏନ୍ଥଲ ଉଡ଼ୁଛନ୍ତି ।

# ମଣିଷ - ଚଢ଼େଇ

ଏକ ଉଚ୍ଚ ପାହାଡ଼ ଉପରେ ସେ ଠିଆ ହୋଇଥିଲେ, ଡେଣାଗୁଡ଼ାକ ଖୁବ୍ ମେଲି ଯାଇଥିଲା । କୌଣସି କାରଣରୁ ପାଇଜାମା ଓ ଫତେଇ ପିନ୍ଧିଥିବା ଏକ ବିଚିତ୍ର ପକ୍ଷୀ ଭଳି ସେ ଦୂରରୁ ଦିଶୁଥିଲେ । ଡେଣାଗୁଡ଼ାକ ମଧ୍ୟ ଅସାଧାରଣ – ପକ୍ଷୀର ପରମାନ ରହିବା ପରିବର୍ତ୍ତେ ସେଗୁଡ଼ିକ ଏକ କାଠ ଛାଞ୍ଚ ଉପରେ ଲୁଗା ଅଣ୍ଟାଯାଇ ତିଆରି ହୋଇଥିଲା, ଥାକଥାକ ହୋଇ ରହିଥିବା ସେହି ଡେଣାଗୁଡ଼ିକ ଜାହାଜ ପାଲ ଭଳି ଦେଖାଯାଉଥିଲା ।

ଦେଖଣାହାରୀ ପାହାଡ଼ ତଳେ ଜମା ହୋଇଥିଲେ । "ଏ ମୁଣ୍ଡପାଗଳଟା କିଏ ?" ପାହାଡ଼ ଉପରକୁ ତାଙ୍କ ହାତ ବାଡ଼ିକୁ ଦେଖାଇ ଭଲ ପୋଷାକପତ୍ର ପିନ୍ଧିଥିବା ଜଣେ ଭଦ୍ରଲୋକ ପଚାରିଲେ । "ଯାହା ଜଣାଯାଉଛି, ପାଗଳଟାର ବେକ ଭାଙ୍ଗିବ ।"

"ସେ ହେଉଛନ୍ତି – ଶ୍ରୀ ଲିଲିଏନ୍ଥଲ", ତାଙ୍କର ଜଣେ ପଡ଼ୋଶୀ କହିଲେ, "ବର୍ଲିନର ଇଂଜିନିୟର ଲିଲିଏନ୍ଥଲ ।"

ସେ ପୁଣି କହିବାକୁ ଚାହୁଁଥିଲେ ଯେ, ଲିଲିଏନ୍ଥଲଙ୍କୁ ଏହି ପ୍ରଥମ ଥର ଉଡ଼ିବା ସେ ଦେଖୁ ନାହାଁନ୍ତି, କିନ୍ତୁ ସେତିକିବେଳେ କିଏ ଜଣେ ବଡ଼ ପାଟିରେ କହିଲା : "ହେଇ ସେ ଉଡ଼ିଲେ" । ସବୁଲୋକ ଉପରକୁ ଦେଖିଲେ । ମଣିଷଟି ତଳଠାରୁ ୩୦ ମିଟର ଯାଏ ଉପରେ ଉଡ଼ୁଥିଲେ । ପିଲମାନେ ଯେଉଁ ଘୁଡ଼ି ଉଡ଼େଇବାକୁ ଏତେ ଭଲ ପାଆନ୍ତି, ମନେହେଲା ସେଇଭଳି ଗୋଟାଏ ଘୁଡ଼ି ସହ ସେ ଯୋଡ଼ି ହୋଇଯାଇଥିଲେ । ସେଇ ଡେଣାଲଗା



ବିମାନ ଉଦ୍ଭାବନର କିଛି କାଳ ପୂର୍ବରୁ କେତେକ ଲୋକ ବିମାନର ଆକାର ପ୍ରକାର ସଂପର୍କରେ କଳ୍ପନା କରିଥିଲେ ।

ସଚଳ ଆବରକମାନ – କଣ୍ଟ୍ରୋଲ ସରଫେସିସ୍ (ପୃଷ୍ଠନିୟନ୍ତ୍ରକ) – ରାଇଟ ଭାଇ ଦୁହେଁ ତିଆରି କରିଥିବା ଗ୍ଲାଇଡରରେ ଦେଖାଯାଇଥିଲା । ପଛରେ ଅଛି ଏକ ରାଡ୍‌ଡର (ଗତିନିୟନ୍ତ୍ରକ), ସାମନାରେ – ଉତ୍ତୋଳକ ।



ଘୁଡ଼ିକୁ କୁହାଯାଇଥିଲା – ଗ୍ଲାଇଡର ବା ଇଂଜିନ୍ ନଥିବା ଉଡ଼ାଜାହାଜ । ଆକାଶରେ ସେଇଟି ଯେତେବେଳେ ଅଣେଇ ହୋଇଗଲା ଓ ଓଲଟି ଯିବାର ଆଶଙ୍କା ଥିଲା, ସେଇ ଉଡ଼ାଳୀ ବିପରୀତ ଦିଗକୁ ତାଙ୍କର ପାଦ ଲମ୍ବାଇ ଦେଲେ ଏବଂ ଭାରସାମ୍ୟ ପୁଣି ଫେରାଇ ଆଣିଥିଲେ ; ତେଣୁ ଆମେ ଦେଖିଲେ ଇଂଜିନ୍ ନଥିବା ଯାନ ଗ୍ଲାଇଡରକୁ ମଣିଷ ଚଳାଇଲା ।

କେତେ ସେକେଣ୍ଡ ପରେ ଗ୍ଲାଇଡରଟି ସୁରୁଖୁରୁରେ ମାଟି ଛୁଇଁଲା । ଲୋକଟି ପଛକୁ ଫେରି ଦେଖିଲେ : "ଓଃ ପ୍ରାୟ ଶହେ ମିଟର ଯାଏ ହେବ" ।

ଡେଣାଗୁଡ଼ିକ ସାହାଯ୍ୟରେ ଉଡ଼ିବାର କୌଶଳ ଆୟତ୍ତକାରୀ ପ୍ରଥମ ମଣିଷ ସେ ଥିଲେ ।



# ଉଡ଼ାଳୀ ଦୁଇ ଭାଇ

# 1903

ଉଇଲ୍‌ବର୍ ଓ ଓର୍‌ଭିଲ୍ ରାଇଟ ଆମେରିକାରେ ରହୁଥିଲେ । ପିଲାଦିନୁ ସେମାନେ ନିଜର ଖେଳନା ଓ ଘୁଡ଼ିଗୁଡ଼ିକୁ ତିଆରି କରିବାକୁ ସୁଖ ପାଉଥିଲେ । ସେମାନେ ଯେତେବେଳେ ବଡ଼ ହେଲେ, ଦୁଇଚକିଆ ସାଇକଲ୍ ମରାମତିରେ ଲାଗିଲେ । ପଡ଼ୋଶୀମାନେ କହୁଥିଲେ – "ପିଲା ଦୁଇଟିଙ୍କର ହାତମାନ ହେଉଛି ପ୍ରକୃତରେ ସୁନା ହାତ ।"

ଦିନେ ଦୁଇ ଭାଇ ଗୋଟିଏ ଖବରକାଗଜରୁ ଲିଲିଏନ୍ଥଲଙ୍କର ମରିବା ଖବର ପଢ଼ିଲେ । ସେଇ ସାହସୀ ଉଡ଼ାଳୀ ଜୋର ପବନକୁ ଟପି ପାରିଲେ ନାହିଁ, ତାଙ୍କର ଗ୍ଲାଇଡରଟି ଓଲଟି ପଡ଼ିଲା ଏବଂ ସେ ଦୁର୍ଘଟଣାରେ ନିହତ ହେଲେ । ଏହା ପରେ ଦୁଇ ଭାଇ ସେମାନଙ୍କର ଗ୍ଲାଇଡର ତିଆରି କରିବେ ଏବଂ ତାକୁ ଉଡ଼େଇବାକୁ ଶିଖିବେ ବୋଲି ସ୍ଥିର କଲେ : କିନ୍ତୁ ଗ୍ଲାଇଡର ଯେପରି ଓଲଟି ନପଡ଼ିବ ସେଥିପାଇଁ କିଛି ଉଦ୍ଭାବନ କରିବାକୁ ହେବ । ସେମାନେ କଣ୍ଟ୍ରୋଲ ସରଫେସିସ୍ (ପୃଷ୍ଠନିୟନ୍ତ୍ରକ) ଓ ରାଡ଼ର (ଯାନର ଗତିନିୟନ୍ତ୍ରଣକାରୀ ଯନ୍ତ୍ର) ଉଦ୍ଭାବନ କଲେ । ଚାଳନଚକ୍ର ସହ ଏକ ଗ୍ୟାସୋଲିନ ଇଂଜିନ୍ ଲଗାଇଲେ ଯନ୍ତ୍ରଟି ତା'ର ନିଜର ଶକ୍ତି ଦ୍ୱାରା ତଳୁ ଉପରକୁ ଉଠିବା ଲାଗି ସମର୍ଥ ହେବ ଏବଂ ଏକ ଉଡ଼ାଜାହାଜରେ ପରିଣତ ହେବ ବୋଲି ସେମାନେ ଭାବିଲେ ।

ଭାଇମାନେ ଇଂଜିନ୍ ତିଆରି ଲାଗି ଅନେକ ଦିନ କାର୍ଯ୍ୟ କରିଥିଲେ, କିନ୍ତୁ ଶେଷରେ ଯାଇଁ ତାହା ପ୍ରସ୍ତୁତ ହୋଇଥିଲା । ସେଇଟି କିପରି ଉଡ଼ିବ, ତାକୁ ପରିଖିବାର ଦିନ ଆସିଲା । ଓର୍‌ଭିଲ୍ ରାଇଟ କଣ୍ଟ୍ରୋଲ ଲିଭରସ୍ (ନିୟନ୍ତ୍ରକ ଦଣ୍ଡଯନ୍ତ୍ର)କୁ ଜାବୁଡ଼ି ଧରି ଡେଣାରେ ରହିଲେ । ଚାଳନଚକ୍ରମାନ ଘୂରିବାକୁ ଆରମ୍ଭ କଲା ଏବଂ ଦମକା ପବନ ତାଙ୍କ ମୁଣ୍ଡପଟକୁ ଛୁଟିଲା । ଯନ୍ତ୍ରଟିର ଗତି ଆରମ୍ଭ ହେଲା, ତା'ର ସ୍କେଟ୍‌ଚକାମାନ ଲୁହାଧାରଣାରେ ଅଧିକରୁ ଅଧିକ ବେଗରେ ଖସଡ଼ିବାରେ ଲାଗିଲା ଏବଂ ହଠାତ୍ ଯନ୍ତ୍ରଟି ଶୂନ୍ୟରେ ଉଡ଼ିଲା । ସେହି ଉପକରଣଟି ଆକାଶରେ ସମାନ ଭାବେ ଉଡ଼ୁନଥିଲା – କେତେବେଳେ ଉପରକୁ ଉଠୁଥିଲା ତ କେତେବେଳେ ତଳମୁହାଁ ହୋଇ ଯାଉଥିଲା, ତଥାପି ଚାଳନଚକ୍ରଗୁଡ଼ିକ ଦ୍ୱାରା ପରିଚାଳିତ ହୋଇ ତାହା ଉଡ଼ୁଥିଲା । ପ୍ରାୟ ତିରିଶ ମିଟର ଉଡ଼ିବା ପରେ ବିମାନଟି ସୁରୁଖୁରୁରେ ଓହ୍ଲାଇଥିଲା ।

"ବର୍ତ୍ତମାନ ହେଲା ମୋ ପାଳି", ଉଇଲ୍‌ବର୍ କହିଲେ । ତାଙ୍କ ଟୋପିକୁ କାନ ଉପରକୁ ଟାଣି ଦେଇ ଡେଣା ଉପରକୁ ଚଢ଼ିଲେ ।

ସେଇ ଦିନ ଦୁଇ ଭାଇ ଚାରି ଥର ଆକାଶକୁ ଉଠିଥିଲେ । ଶେଷ ଥର ସେମାନଙ୍କର ବିମାନ ୨୫୦ ମିଟର ଉଡ଼ିଥିଲା ଏବଂ ଶୂନ୍ୟରେ ପ୍ରାୟ ମିନିଟିଏ ରହିଥିଲା ।



ରାଇଟ ଭାଇ ଦୁହେଁ ବିମାନରେ ପ୍ରଥମେ ଉଡ଼ିଲା ପରେ ବିମାନ ନିର୍ମାଣ ବିଦ୍ୟାର ବିକାଶ ଲାଗି ଭିତ୍ତି ପକାଇଥିଲେ । ଏହା ହେଉଛି – ପରବର୍ତ୍ତୀ "ରାଇଟ" ବିମାନଗୁଡ଼ିକ ମଧ୍ୟରୁ ଗୋଟିଏ ।

# ପ୍ରଥମ ଉଡ୍ଡୟନ




ଏହି ଖବରକୁ ତତ୍କ୍ଷଣାତ୍ କେତେକ ଲୋକ ଖାତିର କରିନଥିଲେ । ରାଇଟ ଭାଇମାନଙ୍କର ପ୍ରଥମ ଉଡ୍ଡୟନ ସଂପର୍କରେ ଜାଣିବା ପରେ ଆମେରିକାର ଜଣେ ସଂବାଦଦାତା କହିଥିଲେ – "ସଂବାଦପତ୍ରରେ ପ୍ରକାଶ ପାଇବା ଲାଗି ତାହା ଉପଯୁକ୍ତ ନୁହେଁ" । "ସେମାନେ ଯଦି ମାଇଲିଏ ଯାଏ ବି ଉଡ଼ି ପାରିଥାନ୍ତେ ତାହେଲେ ଅଲଗା କଥା ହୋଇଥାନ୍ତା, କିନ୍ତୁ କେହି ହେଲେ ତ' ସେପରି କରି ପାରିବ ନାହିଁ ।" ତାଙ୍କ କହିବା ଭୁଲ ହେଲା ।




୫ ବର୍ଷରୁ କମ୍ ସମୟ ମଧ୍ୟରେ ଫରାସୀ ବିମାନଚାଳକ ବ୍ଲେରିଓତ୍ ନିଜ ନକ୍ସାରେ ତିଆରି କରିଥିବା ଗୋଟିଏ ବିମାନରେ ଦୁଇଟି ସହର ମଧ୍ୟରେ ଏକ ଉଡ୍ଡୟନ ଶେଷ କଲେ ; ଏବଂ ଇଂଲିଶ ପ୍ରଣାଳୀ ଉପର ଦେଇ ତାଙ୍କର ସଫଳ ଉଡ୍ଡୟନ ବେଳେ ଲୋକମାନେ ବୁଝି ପାରିଲେ ଯେ, ଉଡ଼ାଜାହାଜ ଏକ ମୂଲ୍ୟହୀନ ଖେଳନା ନୁହେଁ ।

ପ୍ୟାରିସ୍ ନିକଟବର୍ତ୍ତୀ ଏକ ଛୋଟ ସହରରେ ବୈମାନିକମାନଙ୍କର ପ୍ରଥମ ପ୍ରତିଯୋଗିତା କରାଯିବା ଲାଗି ସ୍ଥିର ହେଲା । ଛତିଶ ଜଣ ବିମାନଚାଳକ ନିଜ ନିଜର ବିମାନ ସହ ସେଠାରେ ପହଞ୍ଚିଥିଲେ । କେତେକ ବିମାନ ବିରାଟ ଘୁଡ଼ି ଭଳି, କେତେକ ବିଶାଳ କର୍କି ଭଳି, ଅନ୍ୟାନ୍ୟ ଦୁଇଚକିଆ ସାଇକ୍ଲ ଚକା ଉପରେ ବିଚିତ୍ର ପକ୍ଷୀ ଭଳି ଦେଖାଯାଉଥିଲା ।




"ଏ ଜିନିଷ କ'ଣ ଉଡ଼ିପାରେ ?" – ତାରରେ ଗୁଡ଼ିଆ ହୋଇଥିବା କାଠରେ ଠେସ ଦିଆ ଅବାଗିଆ ଜିନିଷକୁ ଦେଖି ଲୋକେ ଆଶ୍ଚର୍ଯ୍ୟ ହେଉଥିଲେ ।

ଦୁଇଟା ଠେସ କାଠ ମଧ୍ୟରେ ଡେଣା ଉପରେ ଚମଡ଼ାର ଫତେଇ ପିନ୍ଧି ଜଣେ ଲୋକ ବସିଥିଲେ, ତାଙ୍କର ପାଦ ଦୁଇଟି ପାଦାନୀ ଉପରେ ଥିଲା । ସେଇ କାରିଗର ଚାଳନଚକ୍ରକୁ ଘୂରାଇଲେ, ବିମାନଟା ଗର୍ଜନ କଲା ଏବଂ ଡିପ ଉପରେ କୁଦାମାରି ଘାସରେ ଦୌଡ଼ିଲା । କେତେ ସେକେଣ୍ଡ ପରେ ତା'ର ଚକାଗୁଡ଼ିକ ତଳୁଉପରକୁ ଉଠିଲା ।






"ସେ ଉଡ଼ୁଛି !" ଭିଡ଼ ଜମେଇଥିବା ଲୋକମାନେ ଆନନ୍ଦଚକିତ ହୋଇ ପାଟି କରି ଉଠିଲେ । ବ୍ୟାଣ୍ଡ୍‌ବାଦ୍ୟ ବାଜିଲା, ଲୋକମାନେ ସେମାନଙ୍କର ଟୋପିଗୁଡ଼ିକୁ ଆନନ୍ଦରେ ଉପରକୁ ଫିଙ୍ଗିଲେ । ଗୋଟିଏ ନୂଆ ଯନ୍ତ୍ର ବିମାନଶାଳାରୁ ବାହାରକୁ ଆସିଲା ଏକ ବିରାଟ କ୍ୟାନଭିସ୍ ତମ୍ବୁ ଭଳି ଦେଖାଯାଉଥାଏ ।

# "ଉଡ଼ନ୍ତା ବହିଥାକ"

ପ୍ରଥମ ବିମାନଗୁଡ଼ିକୁ ଅନେକ ସମୟରେ କୁହାଯାଉଥିଲା "ଉଡ଼ନ୍ତା ବହିଥାକ", ସେଗୁଡ଼ିକ ପ୍ରକୃତରେ ସେହିଭଳି ଦେଖାଯାଉଥିଲ : ସେଗୁଡ଼ିକରେ ଥିଲା ଠେସ କାଠ, କାଠତକ୍ତା ଓ ବିଭାଜକ ଆଦି । ସେସବୁକୁ ଉଡ଼ାଇବା ଥିଲା ବିପଦଜନକ । ସେପରି ଗୋଟିଏ ବିମାନକୁ ଉଡ଼ାଇବା ଲାଗି ଏବଂ ଶୂନ୍ୟରେ ବିଭିନ୍ନ କୌଶଳ ଦେଖାଇବା ପାଇଁ ଜଣକୁ ଖୁବ୍ ସାହସ ଯୁଟାଇବାକୁ ପଡ଼ୁଥିଲା । ଆକାଶରେ ଏକ "ଉଡ଼ନ୍ତା ବହିଥାକକୁ" ଦେଖି ଲୋକମାନେ ଆନନ୍ଦଚକିତ ହୋଇ ପାଟି କରୁଥିଲେ ଏବଂ ପିଲାମାନେ ମଧ୍ୟ ତାକୁ ଦେଖି ଖୁବ୍ ଖୁସି ହେଉଥିଲେ । ସେମାନେ ଜାଣିଥିବା ବିମାନ ଚାଳକଙ୍କର ବିମାନଗୁଡ଼ିକୁ ଚିହ୍ନୁଥିଲେ । ପିଲାମାନେ କହୁଥିଲେ – "ହେଇ ଦେଖ, କକା ମିଶା ଉଡ଼ୁଛନ୍ତି" । ତାହା ଥିଲା ସେମାନଙ୍କର ଅତିପ୍ରିୟ ମିଖାଇଲ ଇୟେଫିମଭ୍‌ଙ୍କର ଡାକନାମ, ସେ ଥିଲେ ଅନେକ କୀର୍ତ୍ତିମାନ ସ୍ଥାପନକାରୀ ପ୍ରସିଦ୍ଧ ପ୍ରଥମ ରୁଷୀୟ ବିମାନଚାଳକ ।










ଏହା ହେଉଛି "ଉଡ଼ନ୍ତା ବହିଥାକ" । ଏହାକୁ ଉଡ଼ାଇବା ଲାଗି ଖୁବ୍ କମ୍ ଲୋକଙ୍କର ସାହସ ହେବ ।





"ବାଉଆଜେନ" – ପ୍ରଥମ ଲଢ଼ୁଆ ଜାହାଜ ମଧ୍ୟରୁ ଗୋଟିଏ ।



ବ୍ରିଟିଶ ତିନିପକ୍ଷିଆ "ସୋପବିଚ୍" – ତିନି-ଧାଡ଼ିଆ ଡେଣା ଥିବା ଯୁଦ୍ଧ ଜାହାଜ ।



ପ୍ରଥମ ବିଶ୍ୱଯୁଦ୍ଧ ସମୟରେ ଆକାଶ ପଥରେ ଲଢ଼େଇ (୧୯୧୪ – ୧୯୧୮) ।



"ଫାରମ୍ୟାନ୍" ବିମାନଟି ଏକାସାଙ୍ଗରେ ତାଲିମ, କ୍ରୀଡ଼ା ଓ ଯୁଦ୍ଧ-ବିମାନ ଥିଲା ।



# ଆକାଶ ଦୈତ୍ୟ

ପ୍ରତ୍ୟେକ ବିମାନର ନିଜନିଜର ନାମ ଅଛି । ଅଧିକାଂଶ ସମୟରେ ନକ୍‌ସାକାରୀଙ୍କର ନାମ ଅନୁସାରେ ସେଗୁଡ଼ିକ ନାମିତ ହୋଇଥାଏ : ଯଥା "ରାଇଟ", "ଫାରମ୍ୟାନ୍", "ବାଉଆଜେନ", "ବ୍ଲେରିଓତ୍" ଇତ୍ୟାଦି... ସୋଭିଏତ୍ ବିମାନ – ଟି. ୟୁ, ଇଲ୍, ୟାକ୍ ପ୍ରଭୃତିକୁ ମଧ୍ୟ ନକ୍‌ସାକାରୀ ତୁପୋଲେଭ୍, ଇଲ୍ୟୁଶିନ୍ ଓ ୟାକୋଭ୍‌ଲେଭ୍‌ଙ୍କର ନାମାନୁସାରେ ନାମିତ କରାଯାଇଛି; କିନ୍ତୁ ପୃଥିବୀର ପ୍ରଥମ ୪-ଇଂଜିନ୍‌ର ବିମାନ, ପ୍ରସିଦ୍ଧ ରୁଷୀୟ ବାହାଦୁର ଇଲ୍ୟା ମୁରମେସ୍କ ନାମାନୁସାରେ ନାମିତ, ୧୯୧୩ରେ ସେଇଟି ରୁଷିଆରେ ତିଆରି ହୋଇଥିଲା : ସେତେବେଳର ମାନକ ଦୃଷ୍ଟିରୁ ତାହା ଥିଲା ପ୍ରକୃତରେ ଏକ ଦୈତ୍ୟ ଭଳି । ତା'ର ଓଜନ ପ୍ରାୟ ୪ ଟନ୍ ଏବଂ ଏକ ଦୈତ୍ୟ ଭଳି ତାହା ୧୫ ଜଣ ଲୋକଙ୍କୁ ନେଇପାରୁଥିଲା ।

ପ୍ରବଳ ଗର୍ଜନ ସହ ସେଇଟି ସେଣ୍ଟ-ପିଟର୍ସବୁର୍ଗ ଉପରେ ଉଡ଼ିଗଲା ବେଳେ ରାସ୍ତାରେ ଯାତାୟତ ବନ୍ଦ ହୋଇଗଲା,

ଓଜନଦାର ଚାରି ଇଂଜିନ୍‌ବିଶିଷ୍ଟ ବିମାନ – ବୋମାବାହୀ "ଇଲ୍ୟା ମୁରମେସ୍" ରୁଷୀୟ ଇଂଜିନିୟର ସିକୋରସ୍କିଙ୍କ ଦ୍ୱାରା ନିର୍ମିତ ।

ଇଏ ହେଉଛି ଆଉ ଏକ "ଅତିଓଜନଦାର ବିମାନ" । ବିରାଟ "ପାଦଦେଶ", ବିରାଟ ଡେଣା ଏବଂ ଏକ ବାହାଦୁର ନାମଧାରୀ – "ସ୍ୱ୍ୟାତୋଗୋର" ।

ଅଶ୍ୱଦଳ ଭୟରେ ହେର୍ଷାରବ କଲେ ଏବଂ ଅଦ୍ଭୁତ ଯନ୍ତ୍ରଟିକୁ ଦେଖିବା ଲାଗି ଲୋକମାନେ ଉପରକୁ ଚାହିଁଲେ ;

କିନ୍ତୁ ଅନେକ ଦିନଯାଏ ତାହା ଲୋକମାଙ୍କୁ ନିଆ ଅଣା କରିନଥିଲା । ବର୍ଷକ ପରେ ପ୍ରଥମ ବିଶ୍ୱଯୁଦ୍ଧ ହଠାତ୍ ଆରମ୍ଭ ହୋଇଗଲା ; ଏବଂ "ଇଲ୍ୟା ମୁରମେସ୍‌ରେ ମାଲପତ୍ର – ପରିବହନରେ କେତେକ ପରିବର୍ତ୍ତନ କରାଗଲା । ସେଥିରେ ବୋମାଗୁଡ଼ିକୁ ବୋଝେଇ କରାଯାଇଥିଲା , ପୁଚ୍ଛଭାଗରେ ତୋପକମାଣ ରଖାଯାଇଥିଲା , ବିମାନଚାଳକଙ୍କ ନିକଟରେ ଜଣେ ନିରୀକ୍ଷଣକାରୀ ବସୁଥିଲେ । "ଶତ୍ରୁ ସତର୍କ ହୁଅ ! ମାଟି ତଳେ ଯାଇ ଲୁଚୁଛ ! ଯେଉଁଠି ସଙ୍ଗୀନର ମୁନ ପହଞ୍ଚି ପାରିବ ନାହିଁ , ସେଠାରେ ପହଞ୍ଚିବ ବୋମା !"

ଯୁଦ୍ଧ ଚାଲିଥିଲା ଏବଂ ପରେ ବିପ୍ଳବ ଘଟିଲା । ଦୈତ୍ୟକାୟ ବିମାନର ଡେଣାରେ ଲାଲ ତାରକାମାନ ଅଙ୍କିତ ହୋଇଥିଲା ଏବଂ ଲାଲ ବାହିନୀକୁ ସମର୍ଥନ ଦେବା ଲାଗି ତାହା ଉଡ଼ିଥିଲା । ଏହି ବିମାନ "ଇଲ୍ୟା ମୁରମେସ୍" ହେଉଛି ଆମର ପ୍ରସିଦ୍ଧ ବୋମାବାହୀ ସୋଭିଏତ୍ ଆକାଶ ଦୈତ୍ୟଗୁଡ଼ିକର ପୂର୍ବପୁରୁଷ ।



# ସୁଦୀର୍ଘ ଉଡ୍‌ଡୟନର ଅପୂର୍ବ କୀର୍ତ୍ତିମାନ

ମଝିରେ ବନ୍ଦ ନହୋଇ ଉଡ଼ିବା ଲାଗି, ସୋଭିଏତ୍ ୟୁନିଅନ୍‌ରେ ଏକ ସ୍ୱତନ୍ତ୍ର ବିମାନ ଏ. ଏନ୍. ଟି.—୨୫ ତିଆରି ହୋଇଥିଲା । ତା'ର ଡେଣାଗୁଡ଼ିକ ଅତି ଅଧିକ ଲମ୍ବ ଏବଂ ଉଡ୍‌ଡୟନ ବେଳେ ତା'ର ଅଣ୍ଡର - କ୍ୟାରେଜ୍‌କୁ ସଙ୍କୁଚିତ କରାଯାଇ ପାରୁଥିଲା ।

ପ୍ରସିଦ୍ଧ ସୋଭିଏତ୍ ବିମାନ ଉଡ଼ାଳୀ ମିଖାଇଲ ଗ୍ରୋମଭ୍ ତାକୁ ଚଳାଇଲେ । ସେ ଇଂଜିନ୍‌ର ସୁଇଚ ଟିପିଲେ ଏବଂ ଲାଲ-ପକ୍ଷିଆ ବିମାନ ତା'ର ଧାବନ-ପଥରେ ଦୌଡ଼ିଲା ।



୧୯୩୦ରୁ ୧୯୪୯ ମଧ୍ୟରେ ଜଣେ ବିମାନଚାଳକଙ୍କର ଚାଳନ-ବେଳର ପୋଷାକ : ଗରମ ଢିଲା ପାଜାମା, ଲୋମବାଲା ପୂରା ଉଞ୍ଚା ଜୋତା ଓ ଦସ୍ତାନା, ବିମାନଚାଳକଙ୍କୁ ଥଣ୍ଡା ପବନରୁ ରକ୍ଷା କରେ ।



ପୂରା ଧାତୁପତ୍ରରେ ତିଆରି, ପ୍ରଥମ ସୋଭିଏତ୍ ବିମାନ ଏ. ଏନ. ଟି-୨ ଇଉ. ଏସ୍. ଏସ୍. ଆର୍ ।



ଇଂଜିନିୟରମାନେ ସେମାନଙ୍କର ଟୋପିଗୁଡ଼ିକୁ ହଲାଇ ହଲାଇ ଅତିଜୋରରେ ପାଟିକରି କହିଲେ—"ଆମକୁ ନିରାଶ କରିବ ନାହିଁ ମିଖାଇଲେଭିଚ୍ ! ତୁମର ଉଡ୍‌ଡୟନ ନିରାପଦ ହେଉ !"

ତିନି ଦିନ ଧରି ଗ୍ରୋମଭ୍‌ଙ୍କର ବିମାନ ଦେଶ ଉପରେ ଚକର କାଟିବାରେ ଲାଗିଲା । ଉପକରଣମାନ ଅତିନିର୍ଭୁଲ ଭାବେ ଦୂରତ୍ୱ ଦର୍ଶାଇଲା—୩୦୦୦ କିଲୋମିଟର... ୫୦୦୦.. ୧୦,୦୦୦...

ବିଶ୍ୱ କୀର୍ତ୍ତିମାନକୁ କେବେଠୁଁ ଅତିକ୍ରମ କରାଯାଇଥିଲା, କିନ୍ତୁ ବିମାନଟିର ପରିକ୍ରମା ଅବ୍ୟାହତ ଥିଲା, ଶେଷରେ ଯେତେବେଳେ ଓହ୍ଲାଇଲା ଉପକରଣ ଦର୍ଶାଇଲା—୧୨,୪୦୦ କିଲୋମିଟର !

"ଆପଣମାନଙ୍କୁ ଧନ୍ୟବାଦ", ଗ୍ରୋମଭ୍ ଇଂଜିନିୟରମାନଙ୍କ ସହ ହାତ ମିଳାଇ କହିଥିଲେ "ଏଇଟି ପ୍ରକୃତରେ ଏକ ଚମତ୍କାର ଯନ୍ତ୍ର !"



ଟି . ବି-୧ ବା ଏ.ଏନ୍. ଟି-୪ – ୫୦ ବର୍ଷରୁ ଅଧିକ କାଳ ପୂର୍ବେ ନିର୍ମିତ ପ୍ରଥମ ସୋଭିଏତ୍ ଭାରୀ ଓଜନ ବହିଲା ଭଳି ବୋମାବାହୀ ବିମାନ । ଆବଶ୍ୟକ ହେଲେ, ଏ ବିମାନ ତା'ର ଡେଣାଗୁଡ଼ିକରେ ଦୁଇଟି ଲଢୁଆ ବିମାନକୁ ବହି ନେଇ ପାରେ । ୧୯୩୪ରେ, ବିମାନଚାଳକ ଲିୟାପିଦେଭ୍‌ସ୍କି, ବୁଡ଼ିଯାଇଥିବା ଜାହାଜ "ଚେଲ୍ୟୁସ୍‌କିନ୍"ର ଯାତ୍ରୀମାନଙ୍କର ଶିବିରରେ ପ୍ରଥମେ ପହଞ୍ଚିଥିଲେ । ଥରକରେ ସେ ୧୨ ଜଣ ଯାତ୍ରୀଙ୍କୁ ବହି ଆଣିଥିଲେ – ସେମାନେ ସମସ୍ତେ ଥିଲେ ମହିଳା ଓ ଶିଶୁ । ସେହି ବର୍ଷଗୁଡ଼ିକରେ ଏ. ଏନ୍. ଟି-୪ର ସର୍ବାଧିକ ଓଜନ ବୋହିବାର କ୍ଷମତା ଥିଲା ।

1909



୧୯୦୯ । "ବ୍ଲେରିଓତ୍-୧୧" ଏକପକ୍ଷିଆ ଉଡ଼ାଜାହାଜଟି, ପ୍ରଥମେ ଇଂ-ମାଞ୍ଚ ପ୍ରଣାଳୀ ପାର ହୋଇଥିଲା ।

1927




୧୯୨୭ । ମହାସାଗର ଉପର ଦେଇ ଆମେରିକାରୁ ଇଉରୋପକୁ – "ସେଣ୍ଟ ଲୁଇସ୍ ସ୍ପିରିଟ" ଉଡ଼ାଜାହାଜରେ ଚାର୍ଲସ ଲିଣ୍ଡବର୍ଗ ଯାତ୍ରା କରିଥିଲେ ।




1937

୧୯୩୭ । ଭାଲେରି ଚ୍କାଲୋଭ୍‌ଙ୍କର ନେତୃତ୍ୱରେ ଏ.ଏନ୍-ଟି-୨୫ର ବୈମାନିକମାନେ ପ୍ରଥମ ଥର ପାଇଁ ଉତ୍ତର ମେରୁ ଉପର ଦେଇ ଆମେରିକାକୁ ଉଡ଼ିଯାଇଥିଲେ ।




୧୯୧୩ । ପି.ଏନ୍. ନେଷ୍ଟେରୋଭ୍, ରୁଷୀୟ ସାମରିକ ବିମାନଚାଳକ, ପ୍ରଥମ ଥର ପାଇଁ ତାଙ୍କ ବିମାନଟିକୁ ଶୂନ୍ ଚିତ୍‌ମାରି ଉଡ଼େଇ ନେଇଥିଲେ । ଆକାଶରେ ବିମାନ-କୁସ୍ତିର ଏହା ଥିଲା ପ୍ରଥମ ପଦକ୍ଷେପ ।



୧୯୪୧ରେ ଫାସିବାଦୀମାନଙ୍କ ବିରୁଦ୍ଧରେ ପ୍ରଥମ ଲଢ଼ାଇମାନଙ୍କରେ ବାହାଦୁର ଦ୍ରୁତଗାମୀ ଲଢ଼ୁଆ ବିମାନ ଆଇ-୧୬ ।



ୟାକ୍-୯ ଲଢ଼ୁଆ ବିମାନ କେବଳ ଦ୍ରୁତଗାମୀ ନଥିଲା, ଏହା ଅନେକ ଦୂର ପର୍ଯ୍ୟନ୍ତ ଯାଇ ପାରୁଥିଲା । ସେଥିପାଇଁ ତାକୁ ଦୂରଗାମୀ ଲଢ଼ୁଆ ବିମାନ ବୋଲି କୁହାଯାଉଥିଲା ।

# ଶତ୍ରୁ ଉପରେ ଇଲ୍‌ର ଚଢ଼ାଉ

ମହାନ୍ ଦେଶପ୍ରେମୀ ଯୁଦ୍ଧ ବେଳେ ଏହା ଘଟିଥିଲା । ରଣସାମ୍ମୁଖ୍ୟର କୌଣସି ଏକ ନିର୍ଦ୍ଦିଷ୍ଟ କ୍ଷେତ୍ରରେ ଆମର ପ୍ରତିରକ୍ଷା ଘେରକୁ ଭାଙ୍ଗିଦେବା ଲାଗି ଫାସୀବାଦୀମାନେ ଯୋଜନା କରିଥିଲେ । ସେମାନେ ଦୁଇଶହ ଟ୍ୟାଙ୍କ୍ ଏକାଠି କରି ଚଢ଼ାଉ ଆରମ୍ଭ କରିଦେଲେ । ଓଜନଦାର ଟ୍ୟାଙ୍କ୍‌ଗୁଡ଼ିକର ଗତିବେଳେ ତଳମାଟି ମଧ୍ୟ କମ୍ପୁଥାଏ ଏବଂ ଘୃରିଆଡ଼େ ଇଂଜିନ୍‌ର ଗର୍ଜନ ଶବ୍ଦ । ସୋଭିଏତ୍ କମାଣ ଶତ୍ରୁର ଟ୍ୟାଙ୍କ୍‌ଗୁଡ଼ିକ ଉପରେ ତୋପମାଡ଼ ଚଢ଼ାଇଲା, ଶତ୍ରୁର ୧୦ଟି ଟ୍ୟାଙ୍କ୍ ନଷ୍ଟ ହୋଇଗଲା, ତା'ପରେ କୋଡ଼ିଏ...

ଲଢ଼େଇ ଦୀର୍ଘକାଳ ଧରି ଘୃଲିଥିଲା, କିନ୍ତୁ ଶତ୍ରୁର ସୈନ୍ୟ ଦଳ ଥିଲା ଅଧିକ । ଗୋଳା ଶେଷ ହେବା ଉପରେ; ଅନେକ ଟ୍ୟାଙ୍କ୍ ଅବଶ୍ୟ ଧ୍ୱଂସ ହୋଇ ଯାଇଥିଲା ତଥାପି ଶତ୍ରୁର ଆକ୍ରମଣ ଘୃଲିଥାଏ ।




ଗୋଳାବର୍ଷଣକାରୀ ବିମାନ ଇଲ୍-୨ । ତା'ର ପେଟ୍ରୋଲ ଟାଙ୍କୀଗୁଡ଼ିକ ଏତେ ଶକ୍ତ ଥିଲା ଯେ, ସେଥିରେ ଶତ୍ରୁର ଗୁଳି ଭେଦୁନଥିଲା । ପେଟ୍ରୋଲ ପାଇପ୍‌ର ଠିପି ତୁରନ୍ତ ଆପେଆପେ ବନ୍ଦ ହୋଇ ଯାଉଥିଲା ।




ଆକାଶରୁ ଚଞ୍ଚଳ ତଳକୁ ଖସି ପାରିବା ଭଳି ବୋମାବର୍ଷୀ ବିମାନ ଟି. ୟୁ-୨ । ଏହା ସାମରିକ ପର୍ଯ୍ୟବେକ୍ଷଣକାରୀ, ଗୋଳାବର୍ଷଣକାରୀ ଏବଂ ବିଧ୍ୱଂସକପଦାର୍ଥବାହୀ ଭାବେ କାର୍ଯ୍ୟ ମଧ୍ୟ କରୁଥିଲା ।




ପି. ଓ-୨ । ଏହି ବିମାନ ମକା କ୍ଷେତରେ ଓହ୍ଲାଇ ପାରୁଥିଲା ଓ ଉପରକୁ ଉଠି ପାରୁଥିଲା । ଏହାକୁ "କୁକୁରୁଜ୍‌ନିକ୍" ବୋଲି କୁହାଯାଉଥିଲେ ମଧ୍ୟ ଏହା ବିମାନଚାଳନ କ୍ଷେତ୍ରରେ ୩୦ ବର୍ଷ କାର୍ଯ୍ୟ କରିଥିବାରୁ ଏହାକୁ ସର୍ବଦା ଉଚ୍ଚ ସମ୍ମାନ ଦିଆଯାଉଥିଲା । ମହାନ୍ ଦେଶପ୍ରେମୀ ଯୁଦ୍ଧ ବେଳେ (୧୯୪୧-୧୯୪୫ରେ) ଏହା ରାତିରେ ଏକ ବୋମାବର୍ଷୀ ବିମାନ ଭାବେ କାର୍ଯ୍ୟ କରିଥିଲା ।

ହଠାତ୍ ଲାଲ ତାରକା ଅଙ୍କିତ ଉଡ଼ାଜାହାଜର ଏକ ସ୍କ୍ୱାର୍ଡରନ ବଣର ପଛପଟେ ଦେଖାଦେଲା । ସେଗୁଡ଼ିକ ଥିଲା ଆମର ଲଢ଼ୁଆ ବୋମାବର୍ଷୀ ବିମାନ—ମହନୀୟ ଇଲ୍ ; ବୋମା, କମାଣ ଓ ରକେଟ ଆଦିରେ ସଜ୍ଜିତ । ପ୍ରତ୍ୟେକ ବିମାନ ଦୃଢ଼ ସାଞ୍ଜୁରେ ଆଚ୍ଛାଦିତ, ତାହା ଥିଲା ପ୍ରକୃତରେ ଏକ ଉଡ଼ନ୍ତା ଟ୍ୟାଙ୍କ୍ । ବିମାନଗୁଡ଼ିକ ମଧ୍ୟରୁ ଗୋଟିଏ ହଠାତ୍ ମୋଡ଼ିଗଲା ଏବଂ ଭୂଇଁ ଉପରଦେଇ ଉଡ଼ିଗଲା, ତା'ପରେ ଗୋଟିକ ପରେ ଗୋଟିଏ ତା'ପଛରେ ଚାଲିଲା... ବୋମାଗୁଡ଼ିକୁ ଖସାଇ ପକାଯାଇଥିଲା, ଶତ୍ରୁର ଟ୍ୟାଙ୍କ୍‌ମାନଙ୍କରେ ନିଆଁ ଲାଗିଗଲା । ଜଳନ୍ତା ଟ୍ୟାଙ୍କ୍‌ରୁ ଯେଉଁ ଫାସୀବାଦୀ ପଳାଇ ଆସିପାରୁଥିଲା, ସେ ସଙ୍ଗେ ସଙ୍ଗେ କମାଣ ଗୋଳାମାଡ଼ରେ ନିହତ ହେଉଥିଲା ।

"ଷ୍ୱଉଆରତ୍‌ଜେ ତୋଦ୍ !" ସେମାନେ ଆତଙ୍କରେ ଚିତ୍କାର କରୁଥିଲେ, ଜର୍ମାନୀରେ ତା'ର ଅର୍ଥ ହେଲା—"କାଳି ମୃତ୍ୟୁ" । ଫାସୀବାଦୀମାନେ ଆମର ବିମାନ ଇଲ୍-୨କୁ ସେଇ ନାମ ଦେଇଥିଲେ ।




ଲଢ଼ୁଆ ବିମାନ ଏଲ୍. ଏ-୫ । ସେହି ବିମାନକୁ ଚଳାଇ ବିମାନଚାଳକ କୋଝେଦୁବ୍ ଯୁଦ୍ଧ ବେଳେ ୬୨ଟି ଶତ୍ରୁ ବିମାନକୁ ଗୁଳିମାରି ତଳକୁ ଖସାଇ ପକାଇଥିଲେ

A— ପକ୍ଷ ,
B— ଗତିନିୟନ୍ତ୍ରକ ,
C— ସ୍ଥିରକ ,
D— ଉତ୍ତୋଳକ ଯନ୍ତ୍ର ,
E— ଡେଣା ,
F— ପୃଷ୍ଠନିୟନ୍ତ୍ରକ ଏଇଲେରୋନ୍ ,
G— ଉଡ୍‌ଡୟନର ଗତି ପରିମାପକ ନଳ ,
H— ରେଡିଓ · ନିୟନ୍ତ୍ରିତ ରକେଟ ,
I — ଚାଳକଙ୍କର ବସିବା ସ୍ଥାନ ,
J — ନାସାଗ୍ର
K— ବାହାର ଇନ୍ଧନ ଟାଙ୍କୀ ,
L— ଭିତରକୁ ଟଣାଯାଇ ପାରିବା ଭଳି ଅବତରଣ ଗିଅର ,
M— ପଛରୁ ଏକ ଆକ୍ରମଣ ସଂପର୍କରେ ରାଡର ଯନ୍ତ୍ରର ସତର୍କବାଣୀ ,
N— ଶକ୍ତିଚାଳିତ ରକେଟ ଇଂଜିନରୁ ବାହାରୁଥିବା ଅନାବଶ୍ୟକ ବାଷ୍ପର ନିର୍ଗମପଥ ।




# ଶବ୍ଦଠାରୁ ଦ୍ରୁତଗାମୀ

ଲଢ଼ୁଆ ବିମାନଗୁଡ଼ିକର ଏକ ପଂକ୍ତି ଆକାଶରେ ଦେଖାଦେବା ବେଳକୁ ବିମାନ ବାହିନୀର ସମାରୋହ ଶେଷ ହେବାକୁ ଯାଉଥିଲା । ଚଢ଼େଇ ଦଳ ଭଳି ସେଗୁଡ଼ିକ ନିଃଶବ୍ଦରେ ଲୋକମାନଙ୍କ ଉପରେ ଅତି ଚଞ୍ଚଳ ଉଡ଼ିଗଲା , ସେହି ବିମାନଗୁଡ଼ିକ ଅଦୃଶ୍ୟ ହୋଇଯିବା ପରେ ଯାଇଁ ସେସବୁର ଗର୍ଜନ ଏକ ଘଡ଼ଘଡ଼ି ଭଳି ଚାରିଆଡ଼କୁ କମ୍ପାଇ ଦେଲା ।

"କି ଭୟଙ୍କର ଗତି", ଲୋକମାନେ ଚକିତ ହେଲେ, "କଳ୍ପନା କରନ୍ତୁ ତ' ଶବ୍ଦଠାରୁ ଦ୍ରୁତଗାମୀ !"

ସେଇଦିନ ମସ୍କୋବାସୀ ପ୍ରଥମ ଥର ପାଇଁ ଦେଖିଥିଲେ ଶବ୍ଦଭେଦୀ ଜେଟ୍ ବିମାନଗୁଡ଼ିକର ଉଡ୍‌ଡୟନ ।

ବିମାନ-ତୀର , ବିମାନ-ଗୋଳା , ବିମାନ-ରକେଟ... କାହା ସହ ସେହି ବିମାନଗୁଡ଼ିକୁ ତୁଳନା କରାଯିବ ! ହଁ , ଏହା ସତ ଯେ , ଗୋଟିଏ ଜେଟ୍ ବିମାନର ଡେଣାମାନ ଏକ ତୀରର ଅଗ ଭଳି , ବାହାରର ଦେହ ଏକ ଗୋଳା ପରି ଏବଂ ଇଂଜିନ୍ ଏକ ରକେଟ ଯାନ ଭଳି ଦେଖାଯାଏ , ଏପରିକି ଚାଳକର ପୋଷାକ ଜଣେ ମହାକାଶଚାରୀଙ୍କର ପୋଷାକ ଭଳି ଦିଶେ । ବିମାନ ଯେପରି ପ୍ରବଳ ବେଗରେ ଉପରକୁ ଉଠେ ତା'ଯୋଗୁ ସୃଷ୍ଟି ହେଉଥିବା ଅତ୍ୟଧିକ ଭାରରୁ ଚାଳକକୁ ଏପରି ଏକ ପୋଷାକ ଓଳି ଭଳି ରକ୍ଷାକରେ । ମେଘ ପାଖରେ ପହଞ୍ଚିବା ଲାଗି ଏ ବିମାନକୁ ଲାଗେ ମାତ୍ର କେତେ ସେକେଣ୍ଡ ।

ତୁମେମାନେ ଏହି ଛୋଟିଆ ଲେଖାକୁ ପଢ଼ୁଥିବା ବେଳେ , ଏଧରଣର ଏକ ଲଢ଼ୁଆ ବିମାନ ଅତି ଉଚ୍ଚ ଅଶ୍ମମଣ୍ଡଳରେ ଯାଇ ପହଞ୍ଚି ପାରିବ ।




ଗୋଳାବର୍ଷଣକାରୀ ବିମାନଗୁଡ଼ିକ ବଦଳରେ ଶବ୍ଦର ଗତିଠାରୁ ଅଧିକ ବେଗରେ ଯାଉଥିବା ଜେଟ୍ ଲଢ଼ୁଆ ବିମାନ । ଏହି ବୋମାବାହୀ ବିମାନଗୁଡ଼ିକରେ ରକେଟ ସଜା ହୋଇଥାଏ । ସେସବୁରେ ଶକ୍ତିଶାଳୀ ଇଂଜିନ୍‌ମାନ ଓ ତ୍ରିକୋଣୀ ଡେଣାଗୁଡ଼ିକ ଥିବାରୁ ସେଗୁଡ଼ିକ ପ୍ରବଳ ବେଗରେ ଉଡ଼ି ପାରେ ।



୧୯୧୦ । ପ୍ୟାରିସ୍‌ଠାରେ ବିଶ୍ୱପ୍ରଦର୍ଶନୀରେ ପ୍ରଦର୍ଶିତ ପ୍ରଥମ ଜେଟ୍ ବିମାନଗୁଡ଼ିକ ମଧ୍ୟରୁ ଗୋଟିଏ ।



ପ୍ରବଳ ବେଗରେ ଜାହାଜ ଚଳାଇବା ପାଇଁ କେବଳ ତ ତାଲିମ ଦରକାର ପଡ଼େ ନାହିଁ, ସ୍ୱତନ୍ତ୍ର ପୁରା ପୋଷାକ ମଧ୍ୟ ଦରକାର ହୁଏ ।




ୟାକ୍-୧୫ ଜେଟ୍ ଲଢ଼ୁଆ ବିମାନର ଚେହେରାରେ, ପ୍ରପେଲର ଥିବା ବିମାନ ସହିତ ସାଦୃଶ୍ୟ ରହିଛି ।




ମିଗ୍-୧୫ । ଲଢ଼ୁଆ ଜେଟ୍ ବିମାନଗୁଡ଼ିକ ମଧ୍ୟରେ ମିଗ୍ ଗୋଷ୍ଠୀର ବିମାନଗୁଡ଼ିକର ସଂଖ୍ୟା ଅନେକ ।

# ବିମାନ ଉଡ଼େ କାହିଁକି ?

ଭାଲେର୍କାର ବାପା ଜଣେ ବିମାନ ଚାଳକ । ସେ ଯାତ୍ରୀମାନଙ୍କୁ ଭୋଲୋଗ୍‌ଦା ସହରକୁ ନିଆଅଣା କରନ୍ତି ।

ଦିନେ ଭାଲେର୍କା ତାଙ୍କୁ ପଚାରିଲା : "ବାପା ବିମାନ ଉଡ଼େ କାହିଁକି ?"

"ତାହା ପବନ ଯୋଗୁଁ ଉଡ଼େ," ବାପା ଉତ୍ତର ଦେଲେ, କିନ୍ତୁ ଯେତେବେଳେ ଦେଖିଲେ ଭାଲେର୍କା ଏହାକୁ ଅତି ଗୁରୁତ୍ୱ ଦେଇ ପଚାରୁଛି ସେ ତାକୁ ଭଲ ଭାବେ ବୁଝାଇ ଦେଲେ : "ତୁ ଦେଖିଛୁ, ବିମାନର ଗୋଟିଏ ଇଂଜିନ୍ ଅଛି, ଏକ ଚାଳନଚକ୍ର ଓ ଡେଣାମାନ ରହିଛି । ଇଂଜିନ୍ ଚାଳନଚକ୍ରକୁ ଘୂରାଏ, ଚାଳନଚକ୍ର ଶୂନ୍ୟରେ ପେଞ୍ଚଘୂରାମାରେ ଓ ବିମାନଟିକୁ ଆଗକୁ ଟାଣେ ଏବଂ ହାତ ଓ ବାହୁ ପରିବର୍ତ୍ତେ ଡେଣାଗୁଡ଼ିକ – ପବନରେ ଅଡ଼ିଯାଇ ଜମାଇ ରଖେ ।"

"କିନ୍ତୁ ତୁମ ବିମାନରେ ଚାଳନଚକ୍ର ନାହିଁ, କାହିଁକି ?"



ଆଧୁନିକ ଯାତ୍ରୀବାହୀ ବିମାନର ଚାଳକଙ୍କର ବସିବା ସ୍ଥାନରେ ବିବିଧ ଧରଣର ବହୁ ଯନ୍ତ୍ର ଉପକରଣ ରହିଛି ।




A— ରାଡର,
B— ଚାଳକଙ୍କର ବସିବା ସ୍ଥାନ,
C— ଯାତ୍ରୀ ପ୍ରକୋଷ୍ଠ,
D— ଜରୁରୀକାଳୀନ ବହିର୍ଗମନ ପଥ,
E— ରେଡିଓ ଏରିଏଲ,
F— ମଧ୍ୟ ଇଂଜିନ୍, ବାୟୁ ନଳର ଫିନଲେଟ୍,
G— ମଧ୍ୟ ଇଂଜିନ୍‌ର ନିର୍ଗମବାଷ୍ପ – ନାସାଗ୍ର,
H— ପାର୍ଶ୍ୱ ଇଂଜିନ୍,
I— ପକ୍ଷସହ ପଶ୍ଚାଦଭାଗରେ ସଂଯୁକ୍ତ ଗତିନିୟନ୍ତ୍ରକ,
J— ସ୍ଥିରକ ସହ ଉତ୍ତୋଳକ,
K— ଏଇଲେରୋନ୍ ଓ ଅବତରଣ ଡିସେଲେରେସନ୍ ଆବରକ ସହ ବାଁ ଆ ଡେଣା,
L— ସଙ୍କେତ ଆଲୋକ,
M— ପ୍ରଧାନ ଅଣ୍ଡର କ୍ୟାରେଜ୍ ଲେଗ୍,
N— ସମ୍ମୁଖ ଅବତରଣ ଗିଅର,
O— ଯାତ୍ରୀମାନଙ୍କ ପାଇଁ ପାବଚ୍ଛ ପଥ ।



"ଗୋଲିଆଥ" ଅର୍ଥ ବିରାଟକାୟ । ୧୯୨୦ରେ ଏହା ଥିଲ ସର୍ବବୃହତ୍ ଯାତ୍ରୀବାହୀ ବିମାନ ମଧ୍ୟରୁ ଗୋଟିଏ । ଏହା ତା'ର ଆରାମଦାୟକ ପ୍ରକୋଷ୍ଠରେ ୧୪ ଜଣ ଯାତ୍ରୀଙ୍କୁ ନେଇ ପାରୁଥିଲ ।

"ସେଇଟା ତ ଜେଟ୍ ବିମାନ, ତା ପାଇଁ ଦରକାର ନାହିଁ । ଇନ୍ଧନର ଜ୍ୱଳନ ଫଳରେ ଗରମ ବାଷ୍ପ ହୁଏ ଓ ସେଇ ବାଷ୍ପ ଦ୍ୱାରା ତାହା ଆଗକୁ ଠେଲି ହୋଇଯାଏ । କୌଣସି ବିମାନ ପଛରେ ନିଆଁଭଳି ପୁଚ୍ଛ ତୁ କେବେ ଦେଖିଛୁ କି? ସେଇ ବାଷ୍ପ, ସେଥିରେ ଥାଏ ।"

ସେଦିନ ଭାଲେର୍କା ତା ବାପାଙ୍କଠାରୁ ବହୁତ ଶିଖିଲ: ବିମାନର ରାଡ୍‌ଡର (ଗତିନିୟନ୍ତ୍ରଣକାରୀ) ଓ କଣ୍ଟ୍ରୋଲସ୍ (ଅନ୍ୟନିୟନ୍ତ୍ରକମାନ) କେଉଁଠି, ସେଗୁଡ଼ିକୁ ଚଳାଯାଏ କିପରି, ବିମାନକୁ ଚଳାଇବା ପାଇଁ ଆଉ କ'ଣ କ'ଣ ଉପକରଣ ଲଗେ ଇତ୍ୟାଦି... ଭାଲେର୍କା ଯଦି ଛୋଟ ନହୋଇଥାନ୍ତା, ସେ ନିଜେ ସମ୍ଭବତଃ ଗୋଟିଏ ବିମାନ ଚଳାଇପାରନ୍ତା ।

ଏଇଟି ହେଉଛି ୟାକ୍-୪୦ ।
ସବୁଠୁ ଛୋଟ ବିମାନ ମଧ୍ୟରୁ ଗୋଟିଏ, ସେଥିରେ ମାତ୍ର ୨୪ ଜଣ ଯାତ୍ରୀଙ୍କୁ ନିଆଯାଇପାରେ ।

# ବିମାନ ବନ୍ଦର

ମଣିଷ ଉଡ଼ିବାକୁ ଶିଖିବା ସଙ୍ଗେ ସଙ୍ଗେ ବିମାନ ପଥମାନ ସ୍ଥିର କଲା । ପ୍ରଥମେ ସେସବୁ **ଅଳ୍ପଦୂରକୁ** – ପାଖ ପଡ଼ିଶାର ସହରଗୁଡ଼ିକ ମଧ୍ୟରେ', ପରେ **ବେଶିଦୂରକୁ** – ଦେଶଗୁଡ଼ିକ ମଧ୍ୟରେ ନିର୍ଣ୍ଣୀତ ହେଲା । ଅର୍ଦ୍ଧଶତାବ୍ଦୀରୁ କମ୍ ସମୟ ମଧ୍ୟରେ, ସାରା ବିଶ୍ୱରେ ଆକାଶମାର୍ଗଗୁଡ଼ିକ ଜାଲ ଭଳି ବିଛେଇ ହୋଇଗଲା । ବିଭିନ୍ନ ଦେଶ ଓ କମ୍ପାନୀଗୁଡ଼ିକର ସୂଚନାତ୍ମକ ଚିହ୍ନ ସହ ଦ୍ରୁତଗାମୀ ବିମାନମାନ ଦିନରାତି ଚଳାଚଳ କଲା । ପରିଶେଷରେ ସେଗୁଡ଼ିକ ଆସିଲା ବିଭିନ୍ନ ଗନ୍ତବ୍ୟସ୍ଥଳୀକୁ –ଅର୍ଥାତ୍ ବିମାନ ବନ୍ଦରଗୁଡ଼ିକୁ : ସେଠାରେ ଉଡ଼ାଜାହାଜମାନ ରହିବା ଲାଗି ବିମାନଶାଳା, ଯାତ୍ରୀମାନଙ୍କ ପାଇଁ ବିରାଟ ବିରାଟ ପ୍ରକୋଷ୍ଠ, ଗାଡ଼ିରହଣିସ୍ଥାନ, ବିମାନ ଧାବନ ପଥ, ମାଲବାହୀ ଛୋଟ ଟ୍ରକ ଓ ଇନ୍ଧନବାହୀ ଟ୍ରକଗୁଡ଼ିକ ଥାଏ ।

ଅତିବିରାଟ ଇଲ୍ – ୬୨ ବିମାନଟିଏ ସେଠାକୁ ଆସିଲା, ବିମାନ ବନ୍ଦରର ଭବନରେ ବନ୍ଧୁ ଓ ଜ୍ଞାତି - କୁଟୁମ୍ବମାନଙ୍କର ଭିଡ଼ ଜମିଥିଲା ।

"ଆପଣ ଆସିଲେ କେଉଁଠୁ ?" "ଷ୍ଟକ୍‌ହୋଲ୍‌ମରୁ" । "ଆଉ ଆପଣ ?" "ହାବାନାରୁ" । "ହାବାନାରୁ ? ସେଠାରୁ ଆପଣଙ୍କୁ ବିମାନରେ ଆସିବା ପାଇଁ ଲାଗିଲା କେତେ ସମୟ ?"



"ମାତ୍ର ଚଉଦ ଘଣ୍ଟା" ।

ଇତିମଧ୍ୟରେ ରେଡିଓ ଏକ ନୂତନ ଘୋଷଣା କଲା : "ଦୟାକରି ଧ୍ୟାନ ଦିଅନ୍ତୁ, ଓ୍ୱାରସାରୁ ଉଡ଼୍‌ଡୟନ ସଂଖ୍ୟା – ୮୯୦ ବିମାନଟି ଓହ୍ଲାଇଲା"...

ତେଣୁ, ବିମାନ ବନ୍ଦରକୁ ତୁଙ୍କାଟାରେ ନଗରୀର ଆକାଶ-ଦ୍ୱାର ବୋଲି କୁହାଯାଇ ନଥାଏ ।





ଗୋଟିଏ ଜେଟ୍ ହେଲିକପ୍‌ଟରର ଏକ ନକ୍‌ସା ।



ଘୂରା-ଡେଣାବାଲା ଏକ ବ୍ୟୋମଯାନ । ସେହି ବିମାନର ପକ୍ଷମାନଙ୍କରେ ଚାଳନଚକ୍ରସବୁ ରହିଛି । ତାହା ହେଲିକପ୍‌ଟର ଭଳି ଉପରକୁ ଉଠେ ଏବଂ ଏକ ବିମାନ ଭଳି ଉଡ଼େ ।



ହେଲିକପ୍‌ଟର କେ. ଏ-୨୬ । ତାକୁ ସବୁ କାମରେ ଲଗାଯାଇ ପାରେ ; ଏହା ହେଲା ଏକ ଭୂତତ୍ତ୍ୱବିତ୍, ଏକ ଅଗ୍ନିରକ୍ଷକ । ଏହା ଫସଲ ଉପରେ ଔଷଧ ଗୁଣ୍ଡଆଦି ପକାଇ ପାରେ ଏବଂ ଜିନିଷପତ୍ର ଉଠାଇବା ଲାଗି ଏକ କ୍ରେନ୍‌ଯନ୍ତ୍ର ଭାବେ କାର୍ଯ୍ୟ କରିପାରେ ।

# ଏକ ଉପହାର

ଅତିଦୂର, ସାଇବେରୀୟ ତାଇଗାରେ ଏକ ରେଳପଥ ନିର୍ମାଣ ଚାଲିଥିଲା । ଯୁଆଡ଼େ ଚାହିଁବ ଚାରିଆଡ଼େ ଘଞ୍ଚ ବନ ଓ ସନ୍ତସନ୍ତିଆ ପାଟ, କୌଣସି ରେଳଗାଡ଼ି ବା ବାଷ୍ପୀୟ ପୋତ ସେଠାରେ ପହଞ୍ଚି ପାରିବ ନାହିଁ । ଏକ୍ଷେତ୍ରରେ ଗୋଟିଏ ବିମାନ ମଧ୍ୟ କାମ ଦେବ ନାହିଁ, କାରଣ ଆଖପାଖରେ ଓହ୍ଲାଇବାର ସୁବିଧା ପ୍ରଭୃତି ଥାଇ ବିମାନ ବନ୍ଦର ମଧ୍ୟ ନାହିଁ । ଏକମାତ୍ର ସୁଲଭ ପରିବହନ ହେଉଛି ହେଲିକପ୍‌ଟର । ଜଙ୍ଗଲ ସଫା ହୋଇଥିବା ଯେକୌଣସି ଏକ ସ୍ଥାନରେ ଓହ୍ଲେଇ ପାରେ ଏବଂ ଉପରକୁ ଉଠିବା ପାଇଁ ଧାବନ ପଥ ମଧ୍ୟ ଆବଶ୍ୟକ ହୁଏ ନାହିଁ । ଡେଣାଥିବା ଉଡ଼ାଜାହାଜ ପାଇଁ ଧାବନ ପଥ ଆବଶ୍ୟକ, କିନ୍ତୁ ଏକ ହେଲିକପ୍‌ଟରରେ ଡେଣାଗୁଡ଼ିକ ପରିବର୍ତ୍ତେ ଥାଏ ଏକଚାଳନ ଚକ୍ର, ଯାହାକି ଯନ୍ତ୍ରକୁ ଉପର ଆଡ଼କୁ ଟାଣେ ।

ନିର୍ମାଣ ସ୍ଥଳୀରେ ଶ୍ରମିକମାନଙ୍କର ପ୍ରଧାନ ସହକାରୀ ହେଲା ହେଲିକପ୍‌ଟର : ଏହା ସେମାନଙ୍କ ପାଖରେ ଖାଦ୍ୟପଦାର୍ଥ ଓ ଡାକ ପହଞ୍ଚାଏ, ଏପରିକି କ୍ରେନ୍ ଯନ୍ତ୍ର ଭଳି କାର୍ଯ୍ୟ କରେ— ଓଜନଦାର ଲୁହାଧାରଣାଗୁଡ଼ିକୁ ଟେକି ନେଇ ପାରେ ।

ଦିନେ ହେଲିକପ୍‌ଟରର ଅଧିନାୟକ ନିର୍ମାଣକାରୀମାନଙ୍କ ପାଖରେ ପହଞ୍ଚି କହିଲେ : "କାଲି ଅତିଥିମାନେ ଆସିବାର



ଆଶା ଅଛି । ଓସ୍ତାଦ୍ ତାଙ୍କର ବନ୍ଧୁମାନଙ୍କ ସହ ତୁମ୍ଭମାନଙ୍କ ପାଖକୁ ହେଲିକପ୍ଟର ଯୋଗେ ଆସିବେ ।”

“କେମିତିଆ ଓସ୍ତାଦ୍ ?” ନିର୍ମାଣକାରୀମାନେ ହସାହସି ହେଲେ, ତାଇଗାରେ କେବଳ ଜଣେ ଓସ୍ତାଦ୍ – ସେ ହେଲା ଭାଲୁ” ।

ଚାଳକ ଆଉ କିଛି ନକହି ସେଠାରୁ ଚାଲିଗଲେ ।

ତା’ ପରଦିନ ରବିବାର ଥିଲା । ସବୁ ନିର୍ମାଣକାରୀ ଡେରିରେ ଉଠିଲେ । ହେଲିକପ୍ଟର ଇଂଜିନ୍‌ର ଜୋରଶବ୍ଦ ଶୁଣି ସେହି ଲୋକମାନେ ଜଙ୍ଗଲ ସଫା ଜାଗାକୁ ଦୌଡ଼ିଲେ । ସେମାନେ ଯାହା ଦେଖିଲେ ବିଶ୍ୱାସ କରି ପାରିଲେ ନାହିଁ । ସଫା ଜାଗାର ମଝିରେ ଏକ ବିରାଟ ତମ୍ବୁ ଏବଂ ବିଜ୍ଞାପନ ଫଳକରେ ଲେଖାଥିଲା : “ସର୍କସ” । ଗୋଟାଏ ଜୀଅନ୍ତା ମାଙ୍କଡ଼ ସେଇ ଫଳକ ଉପରେ ବସି ଲୋକମାନଙ୍କୁ ଖତେଇ ହେଉଥିଲା । ସର୍କସ ତମ୍ବୁ ଉପରେ ହେଲିକପ୍ଟରଟି ଘୂରୁଥାଏ, ସେଥିରୁ ତଳକୁ ଝୁଲିଥିଲା ଦଉଡ଼ିରେ ତିଆରି ଏକ ନିଶୁଣୀ । ତଳେ ଥିଲେ ଅଭିନେତାଗଣ, ପିଞ୍ଜରାଗୁଡ଼ିକରେ ପଶୁମାନେ ଏବଂ ତାଇଗାର ଓସ୍ତାଦ୍ : ଗୋଟିଏ ଭାଲୁ ମିଖାଇଲ ଇଭାନାଭିଚ୍, ପୋଷାକ ହେଲା – ଗୋଟିଏ ଲାଲ ରଙ୍ଗର କୁର୍ତ୍ତା ଏବଂ ଏକ ଫାଶତୁଣ୍ଡି ।

ନିର୍ମାଣକାରୀ ଶ୍ରମିକମାନେ ଖୁବ୍ ଖୁସି ହୋଇ : “ଜୟଧ୍ୱନି କରୁଥାନ୍ତି ! କହୁଥାନ୍ତି – ସର୍କସ ଆସି ଗଲାଣି ! – ଆମମାନଙ୍କ ଲାଗି ଏହା ହେଲା ଏକ ପ୍ରକୃତ ଉପହାର ! ହେଲିକପ୍ଟରର ଜୟ !”



# ତୁମେ ଯେତେବେଳେ ବଡ଼ ହେବ

ଏକ ଶବ୍ଦ-ଭେଦୀ ବିମାନର କୋଠରୀରେ ତୁମେ ବସିଛ, ବିମାନଟି ଉପରକୁ ଉଠିବା ପୂର୍ବରୁ ଯେଉଁ ଫଳରସ ବଣ୍ଟା ଯାଇଛି ତା'ର ସ୍ୱାଦକୁ ଉପଭୋଗ କରୁଛ ଏବଂ ଝରକାରେ ଚାହୁଁଛ । ବୋଧ ହେଉଛି—ବିମାନଟି ସତେ ଯେପରି ଏକ ଅସୀମ ବରଫକ୍ଷେତ୍ର ମଝିରେ ଠିଆ ହୋଇଛି, ଯଦିଓ ବିମାନଟି ପ୍ରକୃତରେ ଘଣ୍ଟାକୁ ୨୫୦୦ କିଲୋମିଟର ଗତିରେ ଉଡ଼ି ଚାଲିଛି ଏବଂ ବରଫ କ୍ଷେତ୍ର ବୋଲି ସେଠାରେ କିଛି ନାହିଁ । ଆମରି ବିମାନଟି ୨୦ ହଜାର ମିଟର ଉଚ୍ଚତାରେ ପହଞ୍ଚିଗଲାଣି ଏବଂ ବଉଦର ଉପରେ ଉଡ଼ୁଛି; କିନ୍ତୁ ତୁମେ ଯଦି ଏକ ଲଢ଼ୁଆ ବିମାନରେ ଉଡ଼ ତାହେଲେ ତୁମେ ଆହୁରି ୨୫ ବା ୩୦ କିଲୋମିଟର ଉଚ୍ଚକୁ ଉଠି ପାରିବ । ବର୍ତ୍ତମାନ ପାଇଁ ଏହା ହେଉଛି ସୀମା; ବିମାନ ଚାଳନ ବିଦ୍ୟାରେ, ଯାହାକୁ ସେମାନେ କହନ୍ତି "କଲିଂ!" କେବଳ ରକେଟ ଓ ସ୍ପୁତନିକ୍‌ମାନ ଅଧିକ ଉଚ୍ଚକୁ ଉଡ଼ିପାରେ ।

ଶବ୍ଦଠାରୁ ଅଧିକ ଗତିମାନ ପ୍ରଥମ ଯାତ୍ରୀବାହୀ ବିମାନ ଟି. ୟୁ-୧୪୪

ଏପରି ଏକ ଯନ୍ତ୍ର ତିଆରି କରିବା ଖୁବ୍ ଭଲ ହେବ, ଯାହା ସାହାଯ୍ୟରେ ଜଣେ ମହାକାଶକୁ ଉଡ଼ିଯିବ, ଏକ ମହାକାଶ କେନ୍ଦ୍ରରେ ବୁଲିସାରି ବିମାନ ବନ୍ଦରକୁ ଫେରି ଆସିବ । ବର୍ତ୍ତମାନ ସେ ନେଇ ଆମେ କେବଳ ସ୍ୱପ୍ନ ଦେଖିପାରୁ, ଯେପରି ଲୋକମାନେ ଏକ ପରୀକାହାଣୀରେ ସ୍ୱପ୍ନ ଦେଖିଥାନ୍ତି; କିନ୍ତୁ ପ୍ରାୟ ୧୫ ବର୍ଷ ପରେ ତୁମେ ଯେତେବେଳେ ବଡ଼ ହୋଇଯିବ ଏପରି ବିମାନମାନ ସମ୍ଭବତଃ ବାହାରି ସାରିଥିବ ଏବଂ କିଏ ଜାଣେ, ତୁମେ ନିଜେ ସେପରି ଏକ ଡେଣାବାଲା ଜାହାଜକୁ ହୁଏତ ମହାକାଶରେ ଉଡ଼ାଇ ନେଉଥିବ । ତେଣୁ ବିମାନ ଚାଳକମାନଙ୍କର ଗୀତରେ ତୁଚ୍ଛାଟାରେ କୁହାଯାଇ ନାହିଁ, "ଆମେ ଜନମିଛୁ ତ' ପରୀକାହାଣୀକୁ କରିବୁ ସତ !"



